# ଦାଣ୍ଡ ପହଁରା

ବା

## ଷଠୀଓଷା-ଓ କାଞ୍ଜିଅଁଲା ଓଷାକଥା

ପ୍ରକାଶକ—**ଧର୍ମଗ୍ରନ୍ଥ ଷ୍ଟୋର**

( ନୂତନ ମୁଦ୍ରଣ )



ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ—ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ-୨

ଫୋନ୍ ନଂ-୨୪୭୯୬

ମୂଲ୍ୟ—ଦୁଇଟଙ୍କା ପଚାଶ ପଇସା ମାତ୍ର

# ଦାଣ୍ଡପହଁରା କଥା

ବିରଞ୍ଚି ବୋଲି ଏକ ନଗର ଥିଲା । ତହିଁରେ ଖରବାହମ ବୋଲି ଏକ ରାଜା । ତହିଁରେ ବାସୁଦେବ ବୋଲି ଏକ ସାଧବ ଥିଲା । ତାହାର ସାତ ପୁଅରେ ସାତ ବୋହୂ । ସେ ସାଧବ ସାନବୋହୂ ଏକଦିନେ ପିଲାମାନଙ୍କୁ ଛେନା ଗୁଡ଼ ବାଣ୍ଟୁଥିଲା । ସବୁ ପିଲାଙ୍କ ହାତରେ ଟିକିଏ ଟିକିଏ ଦେଲା । ପଛେ ଗୋଟିଏ ପିଲା ଆଇଲା । ତାହାକୁ ଖପରିଟିଏ ଭଣ୍ଡି ଦେଲା । ସେ ବାଳକ ତାହାକୁ ବୋଇଲା ମୋତେ ଖପରି ଦେଇ ଭଣ୍ଡିଲୁ । ମୁଁ ତୋତେ ସାତଥର ଭଣ୍ଡିବି । ଏମନ୍ତ ବୋଲି ସେ ପିଲା ମନରେ କ୍ରୋଧ ହୋଇ ଘରକୁ ଗଲା । କେତେକ ଦିନେ ସେ ପିଲା ସର୍ପାଘାତ ହୋଇ ମରିଗଲା । ସେହି ବାଳକ ସାଧବ ସାନବୋହୂ ଗର୍ଭରେ ରହିଲା । ଦଶମାସ ସମ୍ପୂର୍ଣ୍ଣ ହୋଇ ଜନ୍ମ ହେଲା । ବାଳକ ଜନ୍ମହେଲା ଶୁଣି ସାଧବଘରେ ବହୁତ ଆନନ୍ଦହେଲେ । ଚନ୍ଦନ କାଠରେ ଅନ୍ତୁଡ଼ି ଜାଳିଲେ । ଗୁଆଘିଅରେ ଦୀପ ଜାଳିଲେ । ସେ ପୁତ୍ର ପ୍ରହରକ ଠାରେ ରକ୍ତ ସ୍ରାବ କରି ମରିଗଲା । ମଡ଼ା ଦେଖି ଅତି ଦୁଃଖିତ ହେଲେ । ତାହାକୁ ଶ୍ମଶାନ ଭୂମିରେ ପକାଇ ଆସିଲେ । ଦଶଦିନ ଉତ୍ତାରେ କ୍ରିୟାକର୍ମ କଲେ । ସେ ବୋହୂ ସେହିମାସରେ ଗର୍ଭବାସ ହେଲା । ଦଶମାସ ପୂରଣ ହୋଇ ବାଳକ ଜନ୍ମ ହେଲା । ପୁତ୍ରକୁ ଦେଖି ସାଧବଘର ବହୁତ ଆନନ୍ଦହେଲେ । ଛଅଦିନ ଷଠୀ ଓଷା କଲେ । ସେଦିନ ମାତା ପୁତ୍ର ଶୋଇଅଛନ୍ତି । ରାତ୍ର ଅର୍ଦ୍ଧ ଠାରେ ସେ ପୁତ୍ର ଅନ୍ତୁଡ଼ିରେ ଚମକି ନିଆଁରେ ପଡ଼ି ମରିଗଲା । ଏହା ଦେଖି ସମସ୍ତେ ଆରତ ହେଲେ । ଶ୍ମଶାନ ଭୂମିରେ ପକାଇ ଆସିଲେ । କ୍ରିୟାକର୍ମମାନ କଲେ । ବିପ୍ରମାନଙ୍କୁ ଦାନ କଲେ । ଏମନ୍ତ କେତେଦିନ ଉତ୍ତାରେ

ମୁଣି ସାଧବ ବୋହୂ ଗର୍ଭବାସ ହେଲା । ଦଶମାସ ସମ୍ପୂର୍ଣ୍ଣ ହୋଇ ପୁତ୍ର ଗୋଟିଏ ଜନ୍ମହେଲା । ସାଧବ ଘରେ ବହୁତ ଉତ୍ସବ କଲେ । ସାତଦିନେ ଉଠିଆଶ କଲେ । ବ୍ରାହ୍ମଣମାନଙ୍କୁ ବହୁତ ଧନରତ୍ନ ଦେଲେ । ଏମନ୍ତ ରାତ୍ର ଅନ୍ତରେ ସେ କୁମରକୁ ଦେଖନ୍ତେ ମରିକରି ଶୋଇଅଛି । ତାହା ଦେଖି ବଡ଼ ଆକୁଳ ହେଲେ । ସାଧବ ମନରେ ବିଚ୍ଛୁର କଲେ ମଣ୍ଡୁଛି ଦୋଷରେ ମୋର କୁମର ମଲେ । ଏହା ବିଚ୍ଛୁରି ଶିବାଳୟରେ ବ୍ରାହ୍ମଣ ବରଣ କଲେ । ଗୋ' କ୍ଷୀର ଢଳାଇଲେ । ବ୍ରାହ୍ମଣ ହସ୍ତରେ ଦାନ ଦେଲେ । ଏମନ୍ତ ନାନା ଉପଚ୍ଛରକଲେ ପୁଣି କେତେଦିନପରେ ବୋହୂ ଗର୍ଭବାସ ହେଲା । ଦଶମାସ ସମ୍ପୂର୍ଣ୍ଣରେ ପୁତ୍ର ଜନ୍ମହେଲା । ପୁତ୍ରପାଇ ସାଧବ ବୋହୂ ଉତ୍ସବ କଲା । ଦଶଟି ସ୍ତ୍ରୀ ଦଶଗୋଟି ବାଳକ ଡକାଇ ଆଣିଲେ । ସାଧବ ଘରେ ଉତ୍ସବ କଲେ । ହୁଳହୁଳି ଦେଲେ, ଆନନ୍ଦହେଲେ । ସାଧବଠାରୁ ଶାଢ଼ୀ-ସୁନା ନେଲେ । ଆପଣା ଘରକୁ ଗଲେ । ସେଦିନ ରାତ୍ରରେ ଧାଙ୍ଗିଡ଼ ପରିବାରମାନେ ପୁତ୍ରକୁ ଜଗି ବସିଲେ । ବାରଦିନ ବାରସାବା ବିଧି କଲେ । ସେଦିନ ପିଲା ନିଦ୍ରାରେ ଶୋଇଥିଲା । ତିନିଗୋଟି ବୋବାଳି ଦେଇ ମରିଗଲା । ସମସ୍ତେ ଶୁଣି ବିକଳ ହେଲେ । ସାଧବ ଶୁଣି ସ୍ତମ୍ଭୀଭୂତ ହେଲେ । ଏମନ୍ତ କେତେଦିନଗଲା । ସାଧବବୋହୂ ପୁଣି ଗର୍ଭବାସ ହେଲା । ଦଶମାସରେ ପୁଅ ଗୋଟିଏ ଜନ୍ମ ହେଲା । ପୁଣି ସେହି ପ୍ରକାରେ ବହୁତ ଉତ୍ସବ କଲେ । ଏମନ୍ତେ ଦେଖୁ ଦେଖୁ ଏକୋଇଶ ଦିନ ହେଲା । ବ୍ରାହ୍ମଣମାନଙ୍କୁ ବରଣକଲେ ଓ ଭୋଜନ ଦେଲେ, ଦାନଧ୍ୟାନ କଲେ । ବନ୍ଧୁ କୁଟୁମ୍ବଙ୍କୁ ଭୂରିଭୋଜନ ଦେଲେ କଲ୍ୟାଣ କଲେ । ମାତା ପୁତ୍ରକୁ ବହୁତ ଅଳଙ୍କାର ମଣ୍ଡନ କଲେ, ନାମକରଣ କଲେ । ବନ୍ଧୁପରିଜନମାନେ ଶାଢ଼ୀସୁନା ପାଇ ଯେଝା ଘରକୁ ଗଲେ । ଏଥିଉତ୍ତାରେ ସେ କୁମର ରାତ୍ରରେ କେଣେ ଅନ୍ତର୍ଦ୍ଧାନ

ହୋଇଗଲେ । ତାହାଦେଖି ସାଧବବଂଶ ବହୁତଶୋକକଲେ । ଅଜ୍ଞାନ ହୋଇ ଭୂମିରେ ପଡ଼ିଲେ । ତାଙ୍କ ଅଜ୍ଞାନ ହେବା ଦେଖି ଗ୍ରାମଦେବୀ କହୁଅଛନ୍ତି ତୁମ୍ଭେ କାହିଁପାଇଁ କାନ୍ଦୁଅଛ ? ଯେ ମନୁଷ୍ୟ ନୁହଁଇ, ସେ କୁମର ହରହର କୁମର । ସାଧବ ଘର ବୋହୂ ଯାହାକୁ ଗୁଡ଼ ଖପରା ଭଣ୍ଡାଇଥିଲି, ସେହି କୁମର ସେ । ସେ ପିଲାଠାରେ କେତେ-ବେଳେ ହରହର କୁମର ସଞ୍ଚରିଥାନ୍ତି । ସାଧବବୋହୂ ଯେତେବେଳେ ଗୁଡ଼ ବାଣ୍ଟିଥିଲେ ସେତେବେଳେ ତାହାକୁ ଖପରା ଭଣ୍ଡାଇଥିଲେ । ସେ କହିଲେ ମୋତେ ତୁ ଥରେ ଭଣ୍ଡାଇଲୁ ମୁଁ ତୋର୍ତେ ସାତଥର ଭଣ୍ଡାଇବି । ସେ ସକାଶୁ ତା' ଗର୍ଭରେ ସାତଥର ଯିବ । ଏହା ଜାଣି ବାଳକମାନଙ୍କୁ ନ ଭଣ୍ଡି ଆନନ୍ଦରେ ହୁଳହୁଳି ଦେବ । ଏମନ୍ତ ତା' ଗର୍ଭରେ ଛ'ଥର ଜନ୍ମ ହୋଇ ଭଣ୍ଡିକରି ଗଲା । କେଉଁଥର ମାସେ, କେଉଁଥର ପକ୍ଷେ । ଏପରି ଜାତ ହୋଇ ହତ ହୋଇଗଲା । ପୁଣି ସପ୍ତମ ଗର୍ଭ ଆସି ପ୍ରବେଶ ହେଲା । ଦଶମାସ ସମ୍ପୂର୍ଣ୍ଣରେ ପୁତ୍ର ଗୋଟିଏ ଜନ୍ମହେଲା, ଯେତିକ୍ଷଣି ସେପୁତ୍ର ମରିଗଲା । ତାହାଦେଖି ସମସ୍ତେ ବିରସ ହେଲେ । ବୋହୂକୁ ଅନେକ ଗାଳି ଦେଲେ । ସେ ପିଲାକୁ ଶ୍ମଶାନ ଭୂମିକୁ ନେଲେ । ପିଲାର ମାତା ଶବ ସଙ୍ଗେ ଗୋଡ଼ାଇ ଗଲା, ତାକୁ ପୋତିଦେଇ ଯେଝା ଘରକୁ ଅଇଲେ । ତାହାର ମାତା ସେ ମାଟିପିଣ୍ଡ ପାଖେପାଖେ ଲୁଚିରହିଲା । ସମସ୍ତେ ଆସିବା ଦେଖି ବୁଦାରୁ ବାହାର କରି ଶବ ପାଖେ ବସି ବହୁତ ରୋଦନ କରୁଅଛି । ସେ ସ୍ଥାନ ବଡ଼ ନିର୍ଜ୍ଜନ ହୋଇଅଛି । କୁଆ କୋଇଲି ରବ ନାହିଁ । ଏମନ୍ତ ସମୟେ ନେତେଇ ଧୋବଣୀ ଭ୍ରମଣ କରି ସ୍ୱର୍ଗରୁ ମର୍ତ୍ତ୍ୟକୁ ଆସୁଅଛି । ତାହାର କାନ୍ଦଣା କର୍ଣ୍ଣରେ ଶୁଣିଲା । ତା ପାଖକୁ ଯାଇ ପଚାରିଲା ତୁ କିଏ ? ଶ୍ମଶାନ ଭୂମିରେ ନିର୍ଜ୍ଜନ ସ୍ଥାନରେ କାନ୍ଦୁଅଛୁ । ଭୂତ କି ଡାହାଣୀ ମୋ ଆଗରେ

କହ । ତହିଁକି ସାଧବ ଘର ବୋହୂ କହିଲା ମୁଁ ଡାହାଣୀ କି ଭୂତ କେହି ନୁହଁଇ । ମୁଁ ସାଧବଘର ସାନବୋହୂ । ମୋର ସପ୍ତକୁମର ମଲାରୁ ମୁଁ ବନସ୍ତରେ ବସି କାନ୍ଦୁଅଛି । ଆଜ ମୁଁ କଷ୍ଟେ ପ୍ରାଣଘାତ ହୋଇ ମରିବି । ତହିଁକି କେତେଇ ଧୋବଣୀ କହିଲା ତୁ କାହିଁକି ମରିବୁ । ତୋ ପୁଅମାନେ ଯାଇ ଯେଉଁପୁରରେ ଅଛନ୍ତି ଦେଖେଇଦେବି ଆସେ । ଏମନ୍ତକହି ତାକୁ ଗୋଟିଏ ବୁଢ଼ୀଆଣୀକରି ପିଠେରେ ବସାଇ ସେପୁରକୁ ଘେନଗଲା । ହରିହର କୁମର ଯେ ପୁରରେ ଅଛନ୍ତି ସେ ପୁରରେ ଯାଇ ପ୍ରବେଶହେଲା । ତା ମଝିଅଗଣାରେ ଏକ କଲରାଗଛ ଥିଲା । ଲଟିରେ ନେଇ ବସାଇଦେଇ ତାକୁ କହିଲା, ଏହିଠାରେ ଥାଇ ସବୁକଥା ଶୁଣି ସନ୍ତକ ଧରି କାନରେ ବାନ୍ଧିଥିବୁ, ମୁଁ ସକାଳୁ ଆସିବି । ଏହାକହି ସେହୁ ଗଲା । ସାଧବ ବୋହୂ କଲରାଗଛ ମୂଳେ ଥାଏ । ତାଙ୍କ କଥା ସବୁ ଶୁଣୁଥାଏ । ଏଣେ ହରିହର କୁମର ଝରା ଝଉଁଷରେ ବସିଅଛି । ହୀରାବତୀ ଲୀଳାବତୀ ତାହାର ଦୁଇ ଭାର୍ଯ୍ୟାକୁ କହିଲା ମୁଁ ମାଆଙ୍କଠାକୁ ଯିବି । ତହିଁକି ଦୁଇ ଭାର୍ଯ୍ୟା କହୁଛନ୍ତି ତୁମ୍ଭେତ ବହୁତ ବିଳମ୍ବ କଲ, ଆମେ ଆଉ ଛାଡ଼ି ଦେବୁନାହିଁ । ଏଥର ଗଲେ ଆସିବ ବୋଲି ଆମ ମନରେ ପ୍ରତ୍ୟୟ ନାହିଁ । ତାହା ଶୁଣି ସେ କୁମର କହିଲା ତୁମ୍ଭଦୁହିଁଙ୍କି ଛାଡ଼ି ମୁଁ ମର୍ତ୍ତ୍ୟପୁରରେ ରହି ନପାରେ । କୌଣସି ପ୍ରକାରେ ମୁଁ ତୁମଠାକୁ ଆସିବି । ତାହା ଶୁଣି କନ୍ୟାମାନେ କହିଲେ ତୁମେ କେମନ୍ତେ ଆସିବ । ଆମ୍ଭଙ୍କୁ କହିଦିଅ । ତହିଁକି କୁମର କହିଲା ମୁଁ ବଡ଼ ହେଲାକ୍ଷଣି ଲୋକେ ବୋଲିବେ କି ସୁନ୍ଦର ପୁଅ ହୋଇଛି । ଏହା ବୋଇଲେ ମରିଯିବି ଓ ଆସିବି । ତହିଁକି ଦୁଇଭାର୍ଯ୍ୟା କହିଲେ ତୁମ ମା ଜାଣିବା ଲୋକ ହୋଇଥିବେ । ଲୋକଙ୍କୁ ସବୁ କହିଥିବେ । ତେବେ କେମନ୍ତେ ଆସିବ । ଜନମ ହେଉ ପ୍ରଥମ ମାସରେ ଦୁଧ ଗଇଁଠାଳ

ମନ କରିବ । ମା ନ ଖାଇଲେ ଆସିବ । ଦ୍ୱିତୀୟ ମାସରେ କୋଳଥିଆ ଶାଗକୁ ମନ କରିବ, ମା ନ ଖାଇଲେ ଆସିବ । ତୃତୀୟ ମାସରେ କୋଶଳା ଶାଗକୁ ମନ କରିବ, ମା ନ ଖାଇଲେ ଆସିବ । ଚତୁର୍ଥ ମାସରେ ମୁଳାକାଞ୍ଜି ଖାଇବାକୁ ମନ କରିବ, ମା, ନଖାଇଲେ ଆସିବ । ପଞ୍ଚମ ମାସରେ ଗୁଡ଼ଉଳ ଭଜା ଖାଇବାକୁ ମନ କରିବ, ମା ନ ଖାଇଲେ ଆସିବ । ଷଷ୍ଠ ମାସରେ ଚକୁଳିପିଠା ଖାଇବାକୁ ମନ କରିବ, ମା ନ ଖାଇଲେ ଆସିବ । ସପ୍ତମ ମାସରେ ମୁଗମଣ୍ଡା ଖାଇବାକୁ ମନ କରିବ, ମା ନ ଖାଇଲେ ଆସିବ । ଅଷ୍ଟମ ମାସରେ ମୁଗ ପଇଡକୁ ମନକରିବ ମା ନ ଖାଇଲେ ଆସିବ, ନବମ ମାସରେ ଘାଣ୍ଟତଣ ଖାଇବାକୁ ମନକରିବ, ମା ନ ଖାଇଲେ ଆସିବ । ଦଶମ ମାସରେ ମାଛ ମରିଚ ପାଣିରେ ଖାଇବାକୁ ଇଚ୍ଛା କରିବ, ମା ନ ଖାଇଲେ ଆସିବ । ଏହା ଶୁଣି ଦୁଇଭାର୍ଯ୍ୟା କହୁ ଅଛନ୍ତି ତମ ମା ଜାଣିବା ଲୋକ ହୋଇଥିଲେ ଏକ ମାସରୁ ଦଶ ମାସ ପର୍ଯ୍ୟନ୍ତ ଦଶ ପଦାର୍ଥ ଖାଇବେ ତେବେ କପର ଆସିବ । ତହିଁକି ଭୁମର କହୁଅଛି ଜନମ ହେଲାକ୍ଷଣି ମରିଯିବ । ଏଥିରୁ ଦୁଇଭାର୍ଯ୍ୟ କହିଲେ, ମା ଭୁମର ଜାଣିବା ଲୋକେ ହୋଇଥିବେ । ଜନ୍ମ ହେଲାକ୍ଷଣି ବାମ ଡାହାଣ କର ଦୁଇକାନ ଫୋଡ଼ାଇ ପକାଇବେ । ଛ କଡ଼ାକୁ ବିକ ନ କଡ଼ାକୁ କଣିବେ । ବିକାକଣା ନାମ ଦେବେ । ତେବେ କେମନ୍ତ ଆସିବ । ଭୁମର ବୋଲେ ପାଞ୍ଚ ଦିନର ହୋଇଥିବ । ପଞ୍ଚୁଆତି ନ କଲେ ଆସିବ । ଛ ଦିନରେ ଷଠିଘର ନ କଲେ ଆସିବ । ସାତ ଦିନରେ ଉଠିଆରି ନକଲେ ଆସିବ । ଦଶ ଦିନରେ ଦଶୀ ବନ୍ଦାପନା ନକଲେ ଆସିବ । ବାର ଦିନରେ ବାରପଣ ନ କଲେ ଆସିବି । ଏକବିଂଶ ଦିନରେ ନୂତନ ବସ୍ତ୍ରଅଳଙ୍କାର ନକଲେ ଆସିବ । ଏଥିକି ଦୁଇଭାର୍ଯ୍ୟା କହିଲେ, ମା ଭୁମର ଚତୁରପଣ କରି ସବୁଠାରୁ ସବୁ ସମ୍ଭାର

କରିଥିବେ । ଜନମ ଦିନଠାରୁ ଏକୋଇଶ ଦିନ ପର୍ଯ୍ୟନ୍ତ ସମସ୍ତ ବିଧାନ କଲେ କେମନ୍ତେ ଆସିବ । ତହିଁକି କୁମର କହିଲା । ଗୁରୁଣ୍ଡି କରି ଶଅାଁ ଉମେଇରେ ପଡ଼ି ଆସିବ, ଦଶମାସରେ କାନ୍ଥ ବାଡ଼ଧରି ଛିଡ଼ା ହୋଇଥିବ, ପଡ଼ି ମରିବ ଆସିବ । ଦାନ୍ତ ଉଠିଲାକ୍ଷଣି ଦାନ୍ତ ଗଇଁଠା ନକଲେ ଆସିବ । ଖୁଲିବୁଲି ପାରିଲାକ୍ଷଣି ଧାନ କୁଟାରେ ପାଣି ଅଣାରେ ଘିଅ ଖିଆରେ କାନ୍ଦଧରି କାନ୍ଦିବ । ପରପଞ୍ଚ ପିଲି ବୋଇଲେ ଆସିବ । ଦାଣ୍ଡରେ ଖେଳୁଥିବ ତେଲି ଘର ତେଲପସରି ଭାଙ୍ଗି ଦେବ, ତେଲି ଗାଳି ଦେଲେ ଆସିବ । ଦାଣ୍ଡରେ କୁମ୍ଭାର ହାଣ୍ଡି ଘେନି ଆସୁଥିବ ତାହାର ହାଣ୍ଡି ବାଡ଼େଇ ଦେବ । ତହିଁକି ଗାଳି-ଦେଲେ ଆସିବ । ଏଥକୁ ଦୁଇଭାର୍ଯ୍ୟା କହିଲେ, ମା ସାଙ୍ଗେ ସାଙ୍ଗେ ଥିବେ, ପଣକଠାଇଁ କାଖେଇଦେଇ ବୋଧ କରିବେ । ସେମାନେ ଗାଳି ନ ଦେବେ କେମନ୍ତେ ଆସିବ । ତହିଁ କୁମାର କହିଲି ବୈଶାଖ ମାସରେ ଶୋରିଷ ଫୁଲ ମାଗିବ ନଦେଲେ ଆସିବ । ମାଆର ସେବେ ପୁଅରେ ଶ୍ରଦ୍ଧାଥିବ ପାଣି ହାଣ୍ଡିଠାରେ ସୋରିଷ ବୁଣିଥିବ । ତହିଁକି କୁମର କହୁଅଛି, ଶ୍ରାବଣ ମାସରେ ମେଘ ବରଷୁଥିବ, ସଡ଼କଧୂଳି ମାଗିବ ନଦେଲେ ଆସିବ । ତହିଁକି ଦୁଇଭାର୍ଯ୍ୟା କହିଲେ, ମା ତୁମର ଚତୁର ଲୋକ ହୋଇଥିଲେ ସଡ଼କଧୂଳି ନୂଆ ମାଠିଆରେ ରଖିଥିବେ ମାଗିଲେ ଦେବେ । ତେବେ କେମନ୍ତ କରି ଆସିବ । ତହିଁକି ତୁମର କହିଲି, ମାଘ ମାସରେ ପାଚିଲା ତାଳ ମାଗିବ, ନଦେଲେ ଆସିବ । ଭାର୍ଯ୍ୟା କହିଲେ ତୁମର ମାତା ତେଲ କୁଆରେ ପାଚିଲା ତାଳ ରଖି-ଥିବେ । ମାଗିଲେ ତକ୍ଷଣେ ଦେବେ, ତେବେ କେମନ୍ତେ ଆସିବ । କୁମାର ବୋଇଲା ଏତେ କଥା ସେବେ କରିବେ, ବୋଲିବ ବନ୍ଧ କରିଅ, ବନ୍ଧ ନକଲେ ଆସିବ । ତହିଁକି ଦୁଇଭାର୍ଯ୍ୟା କହିଲେ ସେବେ ତାହାର ଶ୍ରଦ୍ଧା ଥିବ ତେବେ ବନ୍ଧ କରାଇବେ । ତେବେ କେମନ୍ତେ

ଆସିବ । ତହୁଁକ କୁମର କହିଲା, ମୁଁ ବୋଲବ ମାତାକୁ ମୋତେ ବିଭା କରିଯିବୁ । ଯେବେ ପିବ ତେବେ ବେଦୀ ଉପରେ ଦୁଧ ଖାଇବାକୁ ମାଗିବ । ପୋଡ଼ପିଠା ମାଗିବ । କାଞ୍ଜି ମାଗିବ । ମାଛ ମାଗିବ ନ ଦେଲେ ଆସିବ । ତହୁଁକ ଦୁଇଭାର୍ଯ୍ୟା କହିଲେ, ମାତା ତୁମର ଚତୁର ଲୋକ ହୋଇଥିବେ ସଙ୍ଗରେ ଯାଇଥିବେ, ବେଦୀ ପାଖରେ ଟେର ବାଡ଼ଦେଇ ସାହା ମାଗିବ ଦେବେ । ଇତ୍ୟାଦି ପଦାର୍ଥ ଘରଠାରୁ ନେଇଥିବେ ମାଡିଲକ୍ଷଣୀ ଦେବେ । ତେବେ କେମନ୍ତେ ଆସିବ । ତହୁଁକ କୁମର ବୋଇଲ ବରକନ୍ୟା ଦୋଳ-ମୁକୁଟ ହୋଇଥିବେ ଗୁମୁଣ୍ଡିଆ ମଥାରେ ବାଜିବ ଅବା ଘରଚାଳ ବାଜିବ ତେବେ ଆସିବ । ତହୁଁକ ଦୁଇଭାର୍ଯ୍ୟା କହିଲେ ଯଦି ବେଦୀ ଉପରେ ଗୁନ୍ଦୁଆ ଟାଣିଥିବେ, ଓଳତଲେ ଉସୁନା ଧରିଥିବେ । ବରକନ୍ୟାକୁ ଘରକୁ ନେବେ, ତେବେ କେମନ୍ତେ ଆସିବ । ତହୁଁ କୁମର କହିଲା ତେବେ ମୀନକେତନ ମାଳ ମାଗିବ । ଜପୁ ବଜପୁ ଘଣ୍ଟି ମାଗିବ । ଏ ସବୁ ସ୍ୱର୍ଗର ପଦାର୍ଥ । ମା ମର୍ତ୍ତ୍ୟପୁରରେ କାହୁଁ ପାଇବେ । ଦେଇପାରିବେ ନାହିଁ ତେବେ ଆସିବ । ଏମନ୍ତ କଥା ହୁଅନ୍ତେ ମର୍ଦ୍ଦନ ସରିଲା । ସେଠାରୁ ଦୁଇକନ୍ୟା ମର୍ଦ୍ଦନ ମଳକୁଟି ସଙ୍ଗେ ମୀନକେତନ ମାଳ ଜପୁ ବଜପୁ ଘଣ୍ଟି କଲଲାଗଛ ମୂଳକୁ ପକାଇ ଦେଲେ । ଏମାନସବୁ ସାଧବଘର ବୋହୂ ଲୁଗାପଣତରେ ବାନ୍ଧିଦେଲା । ଏମନ୍ତ ବିଧ ପାରିଲା । ନେତେଇ ଧୋବଣୀ ଅଇଲା ବୋଇଲା ସାଧବଃବୋହୂ ଆ ମୋ ସଙ୍ଗରେ ମିବୁ ତହୁଁ ଦୁଇଜଣ ସାଙ୍ଗହୋଇ ଚାଲିଗଲେ । ନେତେଇ ଧୋବଣୀ ବୋହୂକୁ ସାଧବ ଘର ଗଙ୍ଗାଯମୁନା ମରିଇପାଖେ ଛାଡ଼ କରିଗଲା । ଏଣେ ସାଧବଘର ବୋହୂକୁ ଖୋଜୁଛନ୍ତି । ପଣିହାରିମାନେ ଦେଖି ସାଧବଘରେ କହିଲେ, ବୋଇଲେ ତୁମ ବୋହୂ ଆସିଲେଣି । ତାହା ଶୁଣି ବଡ଼ୁତ

ଆନନ୍ଦ ହେଲେ । ବୋଉକୁ ଶୁଆଇଙ୍କର ଘରକୁ ବେନଗଲେ । ଏମନ୍ତେ କେତେଦିନ ଗଲା । କେତେଦିନ ଅନ୍ତରେ ବୋହୂ ଗର୍ଭବାସ ହେଲା । ମାସକଠାରୁ ଦଶମାସ ପର୍ଯ୍ୟନ୍ତ ଯାହା ଶୁଣି ଆସିଥିଲା, ତାହାସବୁ ଖାଇଲା । ଏମନ୍ତ ଦଶମାସ ପୂର୍ଣ୍ଣହେଲା । ମାର୍ଗଶିର ଯାଇ ପୁଷ ହେଲା । ପୁଷମାସ ତୃତୀୟା ଦିନ ରାତ୍ର ତିନଘଡ଼ିଠାରେ ପୁଅ ଗୋଟିଏ ଜନ୍ମ ହେଲା । ଜନ୍ମ ହେଲାକ୍ଷଣି ନାକକାନ ଫୋଡ଼ାଇ ପକାଇଲେ । ଦାଣ୍ଡଆଣୀକି ତାଙ୍କଆଣି ଛ' କଉଡ଼ାକୁ ବିକ ନ କଉଡ଼ାକୁ କିଣିଲେ । କଣା ବିକା ଦାଣ୍ଡ ବୋଲି ନାମ ଦେଲେ । ଏନ୍ତୁଡ଼ି ପକାଡ଼ିଲେ । ପାଞ୍ଚଦିନ ପଞ୍ଚୁଆତି କଲେ ଛ' ଦିନ ଷଠୀଘର କଲେ । ଏକୋଇଶ ଦିନ ପର୍ଯ୍ୟନ୍ତେ ଯେଉଁବିଧି ଯେଉଁବିଧି କଲେ । ପୁଅ ପେଟେଇଲାକ୍ଷଣି ଦ୍ୱାରବନ୍ଧ ଉଛ କଲେ । ସେ କୁମର ଭାର୍ଯ୍ୟାଙ୍କ ଆଗରେ ଯେପରି କହିଥିଲା ସେହିପରି ସବୁ କଥାରେ ଅଳକଲା । ଯାଧିବ ଘର ବୋହୂ ସମୟ ଅନୁସାରେ ତାହା ସବୁ ଠିକ୍ ରୂପେ ଯୋଗାଇଲା । ସେ କୁମର କୌଣସି ମତେ ଯାଇ ନପାରିମା ତାଙ୍କୁ ଦିନେ ମୀନକେତନ ମାଳ ଓ ଜୟ ବିଜୟ ଘଣ୍ଟିମାଗିଲା । ମାଗିଲା-କ୍ଷଣି ମାତା ତାହା ବାହାର କରି ପୁଅକୁ ଦେଲେ । କୁମର ଆଶ୍ଚର୍ଯ୍ୟ ହୋଇ ମନରେ ବିଚାରକଲା ମା ଏସବୁ କାହୁଁ ପାଇଲା । ମାଆକୁ ପଚାରିଲା ଏହାକୁ କେଉଁଠାରୁ ଆଣିଲୁ ? ତାହା ଶୁଣି ମା କହିଲା, ଆରେ ପୁଅ ମୁଁ ତୋହର ଲାଗି ଯେ ପୁରକୁ ଯାଇଥିଲି । ମାତାଠାରୁ ସବୁକଥା ଶୁଣି ନିଶ୍ଚିନ୍ତ ହୋଇ ରହିଲେ । କେତେ କାଳଗଲା, କୁମରର ମାତା ପିତା ସ୍ୱର୍ଗକୁ ଗଲେ କୁମର ତାଙ୍କର କ୍ରିୟାକର୍ମ କରି ସୁଖରେ ଘରେ ରହିଲେ । ଯୋଡ଼ିଏ ପୁଅ ଜନ୍ମିଲେ । ତେଣେ ସ୍ୱର୍ଗରେ ଶ୍ରୀବତ୍ସ ଓ ଲୀଳାବତୀ ଭାବିଲେ ଏତେକାଳ ସ୍ୱାମୀ ନ ଆସିଲେ । ତାଙ୍କୁ କି ଉପାୟରେ ଆଣିବାକୁ ହେବ । ଏହାଭାବି ଦୁହେଁ ଦାଣ୍ଡଆଣୀ ବେଶଧରି ମର୍ତ୍ତ୍ୟ ଉପରକୁ କୋଳା ଯିବାକୁ ଆସିଲେ

ଏଣେ କୁମରର ସ୍ତ୍ରୀ ଆପଣାର ଜ୍ୟେଷ୍ଠ ଜ୍ୟେଷ୍ଠ ପୁଅଙ୍କୁ ଗୃଜଳ ଦେଇ କୋଳ କଣିବାକୁ ପଠାଇ ଦେଲା । ହାଡ଼ିଆଣୀ ଅଳପ କୋଳ ଦେବାରୁ କୁମରର ସ୍ତ୍ରୀ ସଙ୍ଗେ ହାଡ଼ିଆଣୀର ବୋଲ୍ ବୋଲ ହେଲା ହାଡ଼ିଆଣୀ କହିଲେ—

---

# ଆଣି ମାଣି ଠାଣି

## ସ୍ୱାମୀ ଘଇତାର ନାମ ନ ଜାଣି

ସ୍ତ୍ରୀ ଅଭିମାନରେ ସ୍ୱାମୀକି କହିଲା—ଦୁଇଟା ହାଡ଼ିଆଣୀ ମୋତେ ଏପରି କହିଲେ ତୁମର ନାମ କ'ଣ ? ସ୍ୱାମୀ ସକଳ କଥା ଜାଣିପାରି କହିଲା ତୁ ମୋର ନାମ ଜାଣିବୁ ? ଏହା କହି ନଅଁକଲକୁ ତାକୁ ଡାକି ନେଲା । ଅଣ୍ଟାଏ ପାଣିକି ଗଲା ପଚାରିଲା—ଚୋର ମୋ'ରେ କାର୍ଯ୍ୟ କ ନାମରେ କାର୍ଯ୍ୟ ? ସେ ନାହିଁ କହିଲା, ମୋ ନାମରେ କାର୍ଯ୍ୟ । ତହୁଁ କୁମର ବେକେ ପାଣିକି ଗଲା । ପଚାରିଲା ଚୋର ମୋ'ରେ କାର୍ଯ୍ୟ କ ନାମରେ କାର୍ଯ୍ୟ ? ନାହିଁ କହିଲା—ମୋର ନାମରେ କାର୍ଯ୍ୟ । ତହୁଁ କୁମର ହାତଟେକି କହିଲେ ମୋର ନାମ "ହରିହର,କୁମର" । ଏହା କହି ବୁଡ଼ିଗଲା । ଆଉ ଉଠିଲା ନାହିଁ । ସ୍ୱର୍ଗକୁ ଯାଇ ହାସବନ୍ତ ଓ ଲୀଳାବନ୍ତ ସଙ୍ଗେ ରହିଲା । ଏ କଥାମାନ ନାରଦ ପାର୍ବତୀଙ୍କୁ କହିଲେ । ଓଷା ପୁଷ ମାସ ଚୃତୀୟା ଦିନକରିବ । ଦାଣ୍ଡପହଁରିବ, ବାଲିରେ ମୂର୍ତ୍ତି ଥାପିବ । ନୈବେଦ୍ୟ କରିବ । ଫୁଲଫଳ ପକାଇବ । ଏ କଥାକୁ ଯେ ନିନ୍ଦା କରିବ, ସାତଜନ୍ମଯାଏ ମଡ଼ଛୁଟ ହେବ । ଇତି ଶ୍ରୀ ଦାଣ୍ଡପହଁଗ କଥା ସମ୍ପୂର୍ଣ୍ଣ ପୋଥି ପୂଜା ଭିନ୍ନେ, ନଅଁଖୁଡ଼ି ସାମଗ୍ରୀ କରିବ ।

# ଷଠୀଓଷା କାହାଣୀ

ସୁଜନେ ଷଠୀଓଷା କଥା ଶୁଣି । ଶ୍ରାବଣ ଗଲ୍ ଭାଦୁଆ ପଶିଲ୍ ଅମାବାସ୍ୟା ଗଲ୍ ଛଦନେ ଷଠୀଘର ହେଲ୍ । ବୋହୂକୁ ଡାକିଲ୍ ବୋଇଲ୍ ଆଲୋ ଷଠୀଓଷା କରିବା, ନଣନ୍ଦ ଭାଉଜ ମାଟି ଦୁଇ ଟୋକାଇ ଆଣିଲେ ଘର ଲିପିବା । ଟୋକାଇ ଘେନିଲା, ଖଣନ୍ତ ଘେନିଲ୍ ନଣନ୍ଦ ଭାଉଜ ଗଲେ ନଣନ୍ଦ ମାଟି ଗାଡ଼ିଆ ଉପରେ ବସିଛି ଭାଉଜ ମାଟି ଖୋଳୁଛି । ଖଣନ୍ତ ବାଜିଲ୍ ମାଟି ଗାଡ଼ିଆରେ ଭାଳିପଡ଼ିଲ୍, ନଣନ୍ଦକୁ ଘେନି ମାଟିଗାଡ଼ିଆରେ କାନ୍ଦୁଛି । ଷଠୀଦୁର୍ଗାଇ ବିଜେ କରିଥିଲେ । ଅଗନା ଅଗମା ବନସ୍ତେ କେହିନାହିଁ, ବୋଇଲେ ଏ କାହିଁକି କାନ୍ଦୁଛି ବିକଳ ହେଉଛି । ଦଅଁ କି ଦେବତା ତୁମ୍ଭେ ଶୁଣ । ମାଟି ଖୋଳି ଅଇଲୁ ଆମେ ନଣନ୍ଦ ଭାଉଜ ଖଣନ୍ତ ବାଜିଲ୍ ନଣନ୍ଦଟି ମଲ୍ ଆଉ ଶାଶୁଘର ଠିକଣା ନାହିଁ କେଉଁ ଆଡ଼େ ଗଲେ ବାଟ ନ ଜାଣଇ । ଷଠୀଦୁର୍ଗାଇ ବୋଇଲେ ଆଲୋ ତୋ ନଣନ୍ଦ ଏହିକ୍ଷଣି ଜୀଇଁବ ମୁହିଁ ଯାହା ମାଗିବ ଦେବୁକି ? ବୋଇଲ୍ ମହାପ୍ରଭୁ ମୋ ନଣନ୍ଦ ଜୀଉ । ତୁମ୍ଭେ ଦଅଁ କି ଦେବତା । ମୁଁ ଦେବ । ମୁଁ ଯାହା ମାଗିବ ତାହା ଦେବୁକି ? ତୁ ଯେଉଁ ଦୁଇଗୋଟି ଜନ୍ମ କରିବୁ ଗୋଟିଏ ଦେବୁ ସେ ବୋଇଲ୍ ମହାପ୍ରଭୁ ନଣନ୍ଦ ଜୀଇଥାଉ ମୁଁ ଦେବି । ଆଲୋ ଟେଣିକି ଅନା ହୋଇଲେ । ଫୁଲ ପାଣିକରି ମୁଠାଏ ମାଇଲେ ନଣନ୍ଦ ଜୀଇଁବସିଲ୍ । ବୋଇଲ୍ କି ଗୋ କେତେବେଳଯାଏ ଶୋଇ ପଡ଼ିଲି, କେତେବେଳେ ଲିପାପୋଛା କଲେ ଚିତା ପଇତା ଦେଲେ, ଓଷା ସାମଗ୍ରୀ କଲେ, ବୁଢ଼ୀ ପାଣି ଅଇଲେ, ଛ ଉଅଣ, କଲେ, ଛ ପିଠା କଲେ ଶିଳପୁଆ ଧୋଇ ଦେଲେ ଚିତା ପଇତା ଦେଲେ ହଳଦୀ କନା ପିନ୍ଧାଇ ଦେଲେ, ଷଠୀଦଉଲ୍ କଲେ ଛଅଗଣ୍ଡି

ପାଡ଼ିଲେ ଛଅ ଖିଅ ସୂତା କଲେ, ଛଅକେରା ଦୁବ କଲେ ଷଠୀ ଗୃଉଳ ବାନ୍ଧିଲେ, ଜୁଇ ଡାଳ ଆଣିଲେ, ନେନା ପାଣି କଲେ । ନୂଆ ଡିଅଣ ଛଅ ଚକୁଳି ବାଡ଼ିଲେ । ଶାଶୁ ବୋହୂ ଓଷା ପୂଜିଲେ ଖାଇ ସାରିଲେ ଫୁଲ ଦୁବ ଦେନିଲେ । ସେ ମାସ ସେହି ଦିବସେ ପେଟ ପଇଦା ହେଲା । ମାସେ ହେଲା, ଦି'ମାସ ହେଲା, ତିନିମାସ ହେଲା, ଚାରି ମାସ ହେଲା, ପାଞ୍ଚ ମାସ ହେଲା, ଛଅ ମାସ ହେଲା ସାତମାସ ହେଲା, ଆଠମାସ ହେଲା, ନଅମାସ ହେଲା ଦଶମାସ ହେଲା ପୁଅ ଜନ୍ମ କଲା । ଉସତ ହେଲା ଚନ୍ଦନ କାଠ ଇନ୍ଦୁଡ଼ି କଲା । ମାଆ ପୁଅ ହୋଇ ଶୋଇଲେ । ସଞ୍ଜ ହେଲା ଷଠୀ ବୁଇଲ୍ଲାଇ ଅଇଲେ, ବୋଇଲେ ସାଧବ ଘର ବୋହୂ ଯାହା ଯାଚିଅଛ ତାହା ଦେବୁକି ନାହିଁ, ? ମୁଣ୍ଡରେ ତେଲ ଟିକିଏ ଦେଲା, କଜ୍ଜଳ ଦେଲା, ଦୁଧ ଟିକିଏ ପିଆଇ ଦେଲା ହଳଦୀ କନା ଖଣ୍ଡେ ପିନ୍ଧାଇ ଦେଲା ଜଳା ମୁହଁ ବାଟେ ପକାଇଦେଲା ସେ ବୋଇଲା ପୁଅଟିକି କିଏ ନେଇଗଲା । ପୁଅଟି ଶୋଇଥିଲା ତୁନି ହୋଇ ରହିଲା ପୁଣି ସେହି ମାସ ସେହି ଦିବସେ ପେଟ ପଇଦା ହେଲା । ମାସ ଦିବସ ହେଲା ପୁଣି ପୁଅ ଗୋଟିଏ ଜନ୍ମ ହେଲା । ଉଜ୍ଜ୍ୱଳ ହେଲା, ସଭିଏଁ ଜଗି ବସିଲେ ସନ୍ଧ୍ୟାବେଳ ହୋଇଗଲା. ପୁଅଟିକୁ କୋଳେ ଧରିଛନ୍ତି ଷଠୀବୁଢ଼ୀଇ ଅଇଲେ ବୋଇଲେ ସାଧବ ବୋହୂ ଦବୁପରା ? ସେ ଉଠିକି ଗଲା, ମୁଣ୍ଡରେ ତେଲ ଟିକିଏ ଦେଲା ଦୁଧ ଦେଲା କଜ୍ଜଳ ଦେଲା ହଳଦିଆ କନା ଖଣ୍ଡିଏ ଦେଲା ଜଳାମୁହଁ ବାଟେ ଗଳାଇ ଦେଲା ସେ ବୋଇଲା; ପୁଅଟିକି କିଏ ନେଇଗଲା ପୁଅଟି ଶୋଇଥିଲା । ତୁନି ହୋଇ ରହିଲେ ପୁଣି ସେହି ମାସ ଦିବସ ହୋଇଅଛି । ପେଟ ପଇଦା ହେଲା ମାସ ଦିବସ ହେଲା ପେଟ ବଥାଇଲା । ପୁଅଗୋଟିଏ ଜନ୍ମ ହେଲା । ଉସତ ଆନନ୍ଦ ହୋଇଛି, ସଭିଏଁ ଜଗି ବସିଛନ୍ତି ।

ସଞ୍ଜ ବେଳହେଲା ପୁଅଟିକି କୋଳରେ ଧରିଛନ୍ତି । ଷଠୀଦୁଗ୍ଧାଇ ଅଇଲେ, ବୋଇଲେ ମାଧବଘର ବୋହୂ ଦେବୁ ପରା ? ସେ ଉଠିକି କହିଲା, ତେଲ ଟିକିଏ ମୁଣ୍ଡରେ ଦେଲା, କଜ୍ଜଳ ଦେଲା, ହଳଦିଆ କନା ଖଣ୍ଡିକେ ପୁରାଇ ଜଳାମୁହଁ ବାଟେ ଗଳାଇଦେଲା । ସମସ୍ତେ ବୋଇଲେ କିଏ ନେଲା ଲୋ, ଡାହାଣୀ ଖାଇଲା କି, କାନ୍ଦିଲା ବୋଇଲେ ଭୁନ ତାନ ହୋଇ ରହିଲା । ପୁଣି ମାସହେଲା, ପେଟ ପଇଦା ହେଲା । ପୁଣି ପୁଅଟିଏ ଜନ୍ମହେଲା । ପୁଅଟି ପାଞ୍ଚଦିନର ହୋଇଛି, ସମସ୍ତେ ଜଗି ବସିଛନ୍ତି ଗୋସାଇଁ ମାଆ ଜଗି ବସିଛନ୍ତି, ଆଖିରେ ନିଦ୍ରା ଘୂମାଇଲା । ଷଠୀଦୁଗ୍ଧାଇ ଅଇଲେ, ବୋଇଲେ ଆଲୋ ମାଧବଘର ବୋହୂ ଦେବୁପରା ! ଶାଶୁଠାରୁ ନେଇ ତେଲ ଟିକିଏ ଦେଲା । ଦୁଧ ପିଆଇଲା । ହଳଦିଆ କନା ଖଣ୍ଡିକେ ପୁରାଇଲା ଜଳାମୁହଁବାଟେ ପକାଇ ଦେଲା । ଶାଶୁବୋଇଲା କାଲେ ମୋ କୋଳେ ଧରିଥିଲି କିଏ ନେଲା, ଦିଅଁ ନଉଚି କି ଦେବତା ନଉଚି ମୁଁ ଧରିଥିଲି କିଏ ନେଲା । ପୁଣି ଦଶମାସ ଗଲା ପେଟ ପଇଦା ହେଲା । ଶାଶୁ ବୋଇଲା ମା ପେଟ ବଥାଉଛି । ଖଣ୍ଡିଲେ ! ପାଞ୍ଚଗୋଟି ଜନ୍ମକଲୁ । ଆଉ ମୋ ଘରେ ଜନ୍ମ ନ କରିବୁ । ଏହା ବୋଲି ବାହାର କରିଦେଲା । ସୂତା ଖଣ୍ଡିଏ ହାତରେ ଲଗାଇ ଦେଲା । ବୋଇଲା ମା ଯାଅ, ସୂତା ଯେଉଁଠାରେ ସରିବ ସେଠାରେ ଜନ୍ମ କରିବୁ । ପେଟ ଦେଖାଇ କେଉଁଠାରେ ନ ଦେଖାଇବୁ । ସୂତାମୁଣ୍ଡା ଛେଦନଗଲା, ବନସ୍ତରେ ପୁଅ ଗୋଟିଏ ଜନ୍ମକଲା । କାନ୍ଦୁଛି, ଷଠୀଦୁଇଗ୍ଧାଇ ଯାଉଅଛନ୍ତି, ପୁଅଟିକି କାଖିଆଇ ଅଛନ୍ତି, କିଏ କାନ୍ଦୁଛି, କାହିଁକି କାନ୍ଦୁଛି ଡାହାଣୀ କି ଚିରଗୁଣୀ କାନ୍ଦୁଛି ମହାପ୍ରଭୁ ଦୁଃଖୀ ମୁଁ ନଣନ୍ଦ ଭାଉଜ ମାଟି ଖୋଳି ଅଇଲୁ ନଣନ୍ଦଟି ମରିଗଲା କିଏ ସେ ଅଇଲେ ଯାହା ମାଗିବୁ ତାହା ଦେବୁ

କ ମୁଁ ବୋଇଲ ହେଜ ଦେବ । ଏବେ ପାଞ୍ଚୁ ନ୍ତ ଗୋଟିଏ ଦେଲି
ଅଗନାଅଗନ ବନସ୍ତ ବାଟ ନ ଜଣାଇ, ଶାଶୁ ବାହାର୍ କରିଦେଲେ
ଆଲୋ ମୋତେ ସିନା ଦେଇଥିଲୁ ସତ ବଳଲୁ, ଏବେ ତୋ ପାଞ୍ଚ
ପୁଅ ନଅ । ପାଞ୍ଚବରଷର ଗୋଟିଏ, ଚ୍ଚରି ବରଷର ଗୋଟିଏ, ତିନ
ବରଷର ଗୋଟିଏ, ଦୁଇ ବରଷର ଗୋଟିଏ, ବରଷକର ଗୋଟିଏ
ଷଠୀ ଦୁଉ୍ଇ ହାଣ୍ଡୋଲରେ ବଜେକଲେ । ଛଅ ପୁଅଙ୍କୁ ଘେନ
କରି ଆସିଛୁ । ଲୋକେ ବୋଇଲେ, ଆଲୋ ସାଧବାଣୀ ବୋହୂ
ଆସୁଛି । ନାତି ଆସୁଛି । କଳା ହାଣ୍ଡୋଲରେ କେ ଆସୁଛନ୍ତି, ଷଠୀ
ଦୁଉ୍ଇ ଆସୁଛନ୍ତି । ଆହା ମୋତେ କେ ଦେବ ବୋହୂ ନାତି ।
ବୋହୂ ନାତି ପାଏ ପଡ଼ି ଶୋଇଲେ ଘିଚ ଗୋବର ନଜଘ୍ଲା
କଲେ । ଷଠୀଦୁଉ୍ଇ ପାଦତଳେ ପଡ଼ିଲେ, ନାତି ବୋହୂଙ୍କୁ ଘେନ
ଷଠୀଦୁଉ୍ଇ ବୋଇଲେ; ଗଲା ଭାଦ୍ରବ ଅମାସ୍ୟା ଗଲେ ଷଠୀଦିନ
କ କରିବୁ, ଛଅତିଅଣ କରିବୁ, ଛଅଖଣ୍ଡ କନା, ଛଅଗୋଟି
ପିଠା କରିବୁ, ଓଷା ପୂଜିବୁ । ଷଠୀ ଦୁଇଉ୍ଇ, ବୋହୂ ତୋର
ସତ୍ୟରେ ପୁଅ ବୋଇଲୁ । ମୁଁ ଦେଇଗଲି ତୁ ବୋହୂ ପୁଅ ନାତି-
ନାତୁଣୀ ଘେନ ଓଷା ପୂଜିବୁ । ଷଠୀ ଦୁଉ୍ଇଙ୍କ ସେବା କଲ୍ ସୁଖ
ହେଲ, ଦୁଉ୍ଇ ଓଷା ପୂଜିଲୁ । ଷଠୀ ଦୁଉ୍ଇଙ୍କର ଶରଣ ପଶିଲୁ ।
ଏକଥା ଏଠାରୁ ସମ୍ପୂର୍ଣ୍ଣ ହେଲ ।

---

# କାଞ୍ଜିଅଁଲା ଓଷା କଥା

ଶୁଣ ସୁଜନେ କାଞ୍ଜିଅଁଲା କଥା । ପୂଜିଲେ ମନରୁ ଛୁଡ଼ଇ
ବ୍ୟଥା । ସେ ଯେ ସାଧବ ଘର ସାନବୋହୂ । ଗର୍ଭ ଚ୍ଚରିମାସ
ହୋଇଛି ସେହୁ । କଖାରୁ ତିଅଣ ଖାଇତେ ମନ । ପଡ଼ିଶା କଖାରୁ

ଆଣି ବନ୍ଧନ । ଦୋଷମାଳ ସ୍ଥାନେ କଣ୍ଠାରୁ ଥିଲା ଚେସ ପାଣିକଣ୍ଠାରୁ ଘେନ ଅଇଲା । ନକହ୍ନଣ ତାକୁ ଚୋଳଣ ଆଣି । ଭିଉଣ କରଣ ଖାଇଲା ପୁଣି । କଣ୍ଠାରୁଟି ମୋର କିଏ ଖାଇଲା । ମତେ ନକହ୍ନଣ ବେନଣ ଗଲା । ଶେଠପିଲା ତାର ଖାଉ ଏ ଭାବେ । ମାସକୁଦ୍ଦମାସ ନହେଉ ତେବେ । ଏମନ୍ତ ତହିଁ କେତେଦିନ ଗଲା । ଦଶମାସଆସି ସମ୍ପୂର୍ଣ୍ଣ ହେଲା । ପୁଅ ଗୋଟିଏ ତାର ଜନ୍ମହୋଇ । ଜନ୍ମକଲପୁଅ ଶୁଆଇଦେଇ । ଷଠୀଦୁଗ୍ଧଇ ଯେ ଆସିଲେ ଖରେ ପୁଅକୁଘେନଗଲେ ତତ୍ପରେ । ଦେଖିଲେ ପୁଅ ଗୋଟିତହିଁ ନାହିଁ । ତ ଦେଖିକର ସେ ବିମୁଖ ହୋଇ । ଦୁଇମାସେ ପୁଣି ପେଟରେ ହେଲା । ଦଶମାସେ ପୁଅ ଜନ୍ମ ହୋଇଲା । ସେହିରୂପେ ସେ ପୁଅକୁ ଶୁଆଇ । ନିଦ୍ରା ତା ଚକ୍ଷୁରେ ଆସି ଘୂମାଇ । ସେ ପୁତ୍ରକୁ ଷଠୀଦୁଗ୍ଧଇ ନେଲେ । ରାହିଁବା ମାତ୍ରକେ ନାହିଁନା ତଳେ । ପୁଣି ଦୁଇମାସେ ପେଟରେ ହେଲା । ଦଶମାସେ ପୁତ୍ରଜନ୍ମହୋଇଲା । ସଭିଏଁ ଜଗିବସିଥାନ୍ତି ରହିଁ । ଏରୂପେ ଗୃହଦିନ ତହିଁ ଯାଇ । ସେହିରୂପେ ଷଠୀଦୁଗ୍ଧଇ ନେଲେ । ପୁଅ ଗୋଟି ତାର ଲୁଚ୍ଛଇ ଦେଲେ । ପୁଣି ଦୁଇମାସେ ପେଟରେ ହେଲା ଦଶମାସେ ପୁଅ ଜନ୍ମ ହୋଇଲା । ଶାଶୁ ବୋଇଲା ଏ କେମନ୍ତେ ହେଲା । ପିଲାଯାକ ତାର ସବୁ ଖାଇଲା । ଉତ୍ତମ ପୁଅ ଭିଆଇ ଖାଇଲା । କେମନ୍ତେ ହେଉଛି ଜଗି ବସିଲା । ଏହି ରୂପେ ପାଞ୍ଚଦିନ ଜଗିଲେ । ପଞ୍ଚୁ ଆଠ ଦିନ ବିଚ୍ଛୁର କଲେ । ପାଞ୍ଚପୁଅ ଜନ୍ମକରି ଖାଇଲା । ଏ ରୂପେ ତହିଁ କେତେଦିନ ଗଲା । ପେଟରେ ଦେଖି କୋଠାରେ ନ ଦେଖି । ପୁଣି ଗର୍ଭ ହିନ୍ତେ ହୋଇଲା ଦୁଃଖୀ ଦଶମାସ ତହିଁ ହୋଇଲା ଆସି । ପେଟବ୍ୟଥା ସେହୁ ଶାଶୁକୁ ଭାଷି । ଶାଶୁ ବୋଲେ ପାଞ୍ଚଗୋଟି ଖାଇଲୁ । ପୁନରପି ଆଉ ଗର୍ଭହୋଇଲୁ ସୁତା କଣ୍ଡାଏ ଦୁଆରେ ଲଗାଇ । ସେ ସୁତା ଧରିବ ଯେଉଁଠାରେ

ଯାଇ । ସେଠାରେ ପ୍ରସବ କରିବୁ ତୁହି । ଅଗନାଅଗନ ବନସ୍ତେ ଯାଇ କାକର ଅଣ୍ଡା ନ ବୁଡ଼ାଇ ଯହିଁ । କୁଗଡ଼ୀ ବେଣ୍ଟ ବୁଲଇ ନାହିଁ । ସେ ବନେ ପୁଅ ପ୍ରସବିଲୁ ଯାଇ । କାଠ * କଣ୍ଢାଇ ପ୍ରାପ୍ତ ପୁଅ ହୋଇ ପଡ଼ିରହିଛି ତାହାକୁ ଶୁଆଇ । କାନ୍ଦୁଛି ବନସ୍ତେ ଏକାକୀ ହୋଇ । ସଖୀ କେହି ତହିଁନାହିଁ ବନସ୍ତେ । ଷଠୀଦୁଷ୍ଟିଇ ତହିଁ ମିଳନ୍ତେ । ପୁଅ ଗୋଟିଏ ସେ କାଖରେ ଧରି । ଆର ପୁଅକୁ ସେ ଚଲଇ କରି । ବୋଇଲେ ଭୂତ କ କାହାଣୀ ତୁହି । ବନସ୍ତରେ ବସି କାନ୍ଦୁଛି ରହି କେ ମହାପୁରୁଷ ମତେ ପଚ୍ଛର । ସାନବୋହୂଟି ମୁଁ ସାଧବ ଘର । ତହିଁକ ବୋଇଲେ କଥାରୁ ଝେରି । ପଢ଼ଶା ଘରରୁ ଖାଇଲୁ କରି । ସେ ଶାପ ଦେଲି ଯେ ତୋ ପୁଅ ମରୁ । ହରି ନେଇଥିଲୁ ସେହି ଯୋଗରୁ । ସେ ସକାଶେ ତୋର ପୁଅକୁ ଘେନ । ଆସିଅଛୁ ଆମ୍ଭେ ନଅ ବହନ । ପାଞ୍ଚପୁଅ ତୋର ଏ ରୂପେ ନଅ । ପୁଅପୁଅ ଘେନ ଘରକୁ ଯାଅ । ଏମନ୍ତ ଶୁଣି ସେ ଉଠିବସିଲେ । ଷଠୀଦୁଷ୍ଟିଇ ସେ ଦୋଳରେ ଗଲେ । ଛଅପୁଅକୁ ଘେନ ଆସିଅଛୁ । ସାଧବାଣୀ ବୋଲେ କେମନ୍ତେ ବହି । ବୋଇଲେ ଲୋକେ ଆସୁଅଛି ବୋହୂ । ଷଡ଼ନାନ୍ତ ଘେନ ଆସୁଛୁ ସେହୁ । ଏମନ୍ତ ବଚନ ସେତ ଅଇଲା । ଘଡ଼ନଉଣ୍ଟିଇ ଘରକୁ ନେଲା । ଷଠୀଦୁଷ୍ଟିଇ ସେ ବୋଇଲେ ପୁଣ । କାର୍ତ୍ତିକ ଗଲେ ମାର୍ଗଶୀର ପୁଣ । ନବମୀଦିନ କାଞ୍ଜିଅଁଳା ହୋଇ । ବୋହୂ କରିବ ତୁ କରିବୁ ନାହିଁ । ପିଠା ଶୁଖୁଆ ସାତ ଗୋଟି ହେବ । ଗାଧୁଆର ମୁଣ୍ଡେ ସିନ୍ଦୁର ଦେବ । କଜ୍ଜଳ ହଳଦୀ କନା ପିନ୍ଧାଇ । କାଞ୍ଜିମୂଳା ଆଦି ତଅଣ ହୋଇ । ପିଠା ଶୁଖୁଆ ପୋଇପୋଡ଼ା ହେବ । ଛଅପିଠା ନେଇ ଆଗେ ଥୋଇବ । ପୋଖରୀ ଗୋଟିଏ କରି ଯତନ । କଥା

---

* ଛଅପୁଅ···କୁଣ୍ଡାଇପୁଅ ଗୋଟିଏ ପୁଅ ହୋଇଗଲା ।

ମାଣ୍ଡ ଗୁଡ଼ ବାଲୁଙ୍ଗା ଧାନ । ସାରୁଗଣ୍ଡ ନେଇ ତହିଁ ଥୋଇବ । ପୋଇଖାଡ଼ଆ କାହାକୁ ନ ଦେବ । ଛଅଣ ଘୃତ ପୁଅକୁ ଖୁଆଇ ଯାହା ନ ଖାଇ ତାହା ପୋତିଦେଇ । ବାନ୍ଧୁଣୀ ମଉଛୁମାନେ ଯେ କରିବେ । ଯେ ମନାସେ ଯାହା ସେ ତା ପାଇବେ । ସାଧବାଣୀ କଥା ମନେ ରଖଇ । ଷଠୀକି ନେଇ ଆସନେ ବସାଇ । ଅର୍ଘ୍ୟ ଗନ୍ଧପୁଷ୍ପ ନୈବେଦ୍ୟ ଦେଲା । ପାଏ ପଦ୍ମ ଶୋଇ ମେଲଣି ଦେଲ । କାର୍ତ୍ତିକ ଗଲା ମାର୍ଗଶୀର ହେଲା । ନବଦନେ କାଞ୍ଜିଅଁଳା ପଡ଼ିଲା ପୋଖରୀ ବାଲୁଙ୍ଗା ଧାନ ସେ ସାରୁ । ପିଠା ଶୁକୁଆ ସାତଗୋଟି କରୁ । ହଳଦିଆ କନା ପିନ୍ଧାଇ ଦେଇ । ସିନ୍ଦୂର କଜ୍ଜଳ ତହିଁରେ ଦେଇ । ଷଠୀଦୁହିତାଙ୍କୁ ତହିଁ ବସାଇ । ତାଙ୍କ ନାମରେ ତହିଁ ପୂଜା ଦେଇ । ଗୁଣା ବସଣୀ ଅଳଙ୍କାରମାନ । ଦେଇ ପୂଜା କଲେ ଯଥା ବିଧାନ । କଖାରୁ କାଞ୍ଜି କରଣ ବିଧାନ । ଛ' ପିଠା ତହିଁରେ କରି ଯତନ । ଘୃତ ବାଡ଼ିଣ ପୂଜାବିଧି କଲା । ଅର୍ଘ୍ୟ ଗନ୍ଧପୁଷ୍ପ ନୈବେଦ୍ୟ ଦେଲା । କଥାଟିଏ କହି ଅର୍ଘ୍ୟ ଯେ ଦେଇ । ପାଏପଦ୍ମ ମେଲଣି ଦେଇ କ୍ରମେ ହେଲା ତାର ବହୁତଧନ । ପୁଅ ଝିଅ ନାତିନାତୁଣୀ ପୁଣ । ଅଣନାତି ଘେନି କରଇ ଘର । ବେଳୁ ବେଳ ଧନ ଜନ ଅପାର । ଉତ୍ତମ ଭାଗ୍ୟ ତା ହେଲା ଉଦୟେ । ତେଣୁ କାଞ୍ଜିଅଁଳା ଜଗତ ହୋଏ । ସେ ଦିନ ଆଶ୍ରାକୁ ଆଶ୍ରୟକଲେ, ଏହି ଓଷା ଫଳ ମିଳଇ ଭଲେ । ଏହା ଯେ ପଢ଼ନ୍ତି ଶୁଣନ୍ତି ନର । ସକଳ ପୁରୁଷାର୍ଥ ହୁଏ ତାର । ଏ କାଞ୍ଜିଅଁଳା କଥା ଗୀତରେ । ଦ୍ୱିଜ ରଘୁନାଥ ପ୍ରକାଶ କରେ ।

---

ସମାପ୍ତ

ଗଣେଶ୍ୱର ମୁଦ୍ରଣ, ଅଲିଶା ବଜାର, କଟକ ୨

# ବିଜ୍ଞାପନ

ହେ ଧର୍ମପିପାସୁମାନେ,

ଆପଣମାନେ ବହୁପୂର୍ବରୁ ରାମାୟଣ ପଢ଼ିବାର ସୁଯୋଗ ଏପର୍ଯ୍ୟନ୍ତ ପାଇ ଆସୁଛନ୍ତି, ମାତ୍ର ପର୍ଶୁରାମଙ୍କର ଜୀବନ ଚରିତ କୌଣସିଥିରେ ପାଇପାରିନାହାନ୍ତି । ଏଣୁକରି ଆପଣମାନଙ୍କର ଜାଣିବା ନିମିତ୍ତ ବହୁ ଗ୍ରନ୍ଥ ଓ ତାଳପତ୍ର ପୋଥି ଇତ୍ୟାଦି ପଠନ କରି ସରଳ ଭାଷାରେ "ପର୍ଶୁରାମ ପୁରାଣ"ଟିକୁ ସର୍ବାଙ୍ଗ ସୁନ୍ଦର କରିଛି । ଯାହାକି ମୂର୍ଖଠାରୁ ପଣ୍ଡିତ ପର୍ଯ୍ୟନ୍ତ ସମସ୍ତଙ୍କର ଶ୍ରୁତି ମଧୁର ହେବ ।

ଏଠାରେ ପ୍ରଶ୍ନକାରୀ ହୁଏ "ପର୍ଶୁରାମ" ଭଗବାନଙ୍କର ଷଷ୍ଠ ଅବତାର ରୂପେ ଜନ୍ମ ହୋଇ ତପସ୍ୟା କରି ନିଳା ପାଇଲେ କାହିଁକି? ଅବତାର ଭିତରେ ହିଂସା ଆଚରଣ କରି ଦମନ" କରିବାର କାରଣ କ'ଣ? ପୁଣି ଗୋଟିଏ ଯୁଗରେ ଅବତାର (ରାମଚନ୍ଦ୍ର ଓ ପର୍ଶୁରାମ) ର କାରଣ କ'ଣ? ବଂଶରେ "ପର୍ଶୁରାମ" ସୂର୍ଯ୍ୟବଂଶରେ "ରାମଚନ୍ଦ୍ର" ଓ ଚନ୍ଦ୍ରବଂଶରେ "ବଳରାମ" ଏହାର ବୃତ୍ତାନ୍ତ ଏଥିରୁ ବୁଝିପାରିବେ ପର୍ଶୁରାମ ବିଷ୍ଣୁଙ୍କର କେଉଁ କଳା ଧରି ଜନ୍ମ ହୋଇଥିଲେ ତାହାର ପ୍ରମାଣ ଜାଣି ପାରିବେ ।

**ଏସବୁ ଅନେକ ଗ୍ରନ୍ଥକର୍ତ୍ତାଙ୍କର ମତ ଗୃହୀତ କରାଯାଇ ଲେଖାଯାଇଛି ।**

---

**ଯୋଗାଯୋଗ ଠିକଣା—**

**ପ୍ରାପ୍ତିସ୍ଥାନ — ଧର୍ମଗ୍ରନ୍ଥ ଷ୍ଟୋର ।**
**ପ୍ରୋପ୍ରାଇଟର — ଶ୍ରୀ ବିଦ୍ୟାଧର ସାହୁ ।**
ଅଲିଶା ବଜାର, କଟକ-୨